# ଜ୍ଞାନ-ଗଙ୍ଗା ।

(ପ୍ରଥମ ଭାଗ ।)

ଖଲ୍ଲିକୋଟ ଏବଂ ଅଷ୍ଟଦୁର୍ଗାଧୀଶ୍ୱର

ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବଙ୍କ

ଦ୍ୱାରା

ସମ୍ପାଦିତ ଓ ପ୍ରକାଶିତ ।

ଜ୍ଞାନ-ଗିରିର ଉଚ୍ଚତର ଶିଖରରେ ଆରୋହଣ କର ଏବଂ ଅଜ୍ଞାନତା ବିନାଶ କର । ମାନବର ଯାହା ଜ୍ଞାତ ହେବା ଆବଶ୍ୟକ ଏପରି କୌଣସି ବିଷୟ କହିବାରୁ ବିରତ ହୁଅନାହିଁ । ଟମାସ୍ ଗାରଫିଲ୍ଡ୍ ।

ରମ୍ଭା ମର୍ଦ୍ଦରାଜ-ପ୍ରେସରେ ମୁଦ୍ରିତ ।

୧୯୦୪

ମୂଲ୍ୟ ଏକଅଣା ।



# ଭୂମିକା ।

ଅଜକାଲ ଶିକ୍ଷିତବ୍ୟକ୍ତିମାନେ ବିଦେଶୀୟ ବିଖ୍ୟାତ ବ୍ୟକ୍ତି-ମାନଙ୍କ ବଚନମାଳା ପ୍ରାୟ ସକଳ ସମୟରେ ଉଦାହରଣ-ଉପଦେଶରୂପେ ବ୍ୟବହାର କରିଥାନ୍ତି । ଦୁଃଖର ବିଷୟ ଉତ୍କଳଭାଷାରେ ସେହିସବୁ ସାରବାକ୍ୟ ଶିକ୍ଷାର ଉପଯୋଗୀ କୌଣସି ପୁସ୍ତକ ନଥିବାରୁ ଅପର ସାଧାରଣ ବ୍ୟକ୍ତିମାନେ ତାହା ଜାଣି ପାରୁନାହାନ୍ତି । ଏହି ଅଭାବ ପୂରଣ କାମନାରେ ଆମ୍ଭେ କେତେଗୁଡ଼ିଏ ବୈଦେଶିକ ମହାଜନୋକ୍ତି ସଙ୍କଳନ କରି ଏ ପୁସ୍ତକଖଣ୍ଡି ପ୍ରକାଶ କଲୁଁ । ଏତଦ୍ୱାରା ଜନ-ସାଧାରଣଙ୍କର ଉପକାର ଲକ୍ଷିତ ହେଲେ ଅତଃପର ଦେଶୀୟ ମହାଜନମାନଙ୍କ ସଦୁକ୍ତି ସଂଗ୍ରହ ଓ ପ୍ରକାଶର ଚେଷ୍ଟା କରାଯିବ ।

ଏ ପୁସ୍ତକ ସମ୍ପାଦନ ବିଷୟରେ 'ପ୍ରଜାବନ୍ଧୁ'ର ସମ୍ପାଦକ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ବିଶେଷ ସାହାଯ୍ୟ କରିଥିବାରୁ ମୁଦ୍ରିତ ପୁସ୍ତକ ସହିତ ଏ ଗ୍ରନ୍ଥର ସ୍ୱତ୍ୱାଧିକାର ତାହାଙ୍କୁ ପ୍ରଦାନ କଲୁଁ ।

୧୫ । ୭ । ୦୪ — ଶ୍ରୀ ହରିହର ମର୍ଦ୍ଦରାଜ ଦେବ ।
ରମ୍ଭା ରାଜପ୍ରାସାଦ — ରାଜା—ଖଲ୍ଲିକୋଟ ଏବଂ ଅଠଗଡ଼ ।




ସଂସାରରେ ପାପପରି ପୁଣ୍ୟ ମଧ୍ୟ ସଂକ୍ରାମକ । ବର୍କ ।

ରମଣୀ ଈଶ୍ୱରଙ୍କର ପ୍ରଧାନ ସୃଷ୍ଟି । କଂଗ୍ରେଭ ।

ସଦିଚ୍ଛା ସତ୍‌କାର୍ଯ୍ୟର ବୀଜ ସ୍ୱରୂପ । ଟେମ୍ପଲ ।

ସ୍ତ୍ରୀଲୋକମାନେ ଆମ୍ଭମାନଙ୍କୁ ଶାନ୍ତି, ସୌଜନ୍ୟ ଏବଂ ମହତ୍ତ୍ୱ ଶିକ୍ଷା ଦିଅନ୍ତି । ଭଲ୍‌ଟାୟାର ।

ଲୁହା ଲୁହାକୁ ପଜାଏ । ବାଇବେଲ ପ୍ରବାଦ ।

ମୁଁ ଯାହାକିଛି ହୋଇଅଛି ତାହା ମା'ର ଦ୍ୱାରରେ ଗଠିତ ହୋଇ । ଜନ କୁଇନ୍ସି ଆଡାମ୍ସ ।

ସ୍ତ୍ରୀଲୋକ ଯଦବା ସ୍ୱର୍ଗଭ୍ରଂଶର କାରଣ ହୁଏ, ତଥାପି ସେହି କେବଳ ସ୍ୱର୍ଗକୁ ପୁନରୁଦ୍ଧାର କରିଅଛନ୍ତି । ହୁଇଟାର ।

ସ୍ତ୍ରୀଲୋକ ଯେତିକି ସ୍ତ୍ରୀ ପ୍ରକୃତି ସମ୍ପନ୍ନ ହେବେ ସେତିକି ପୂର୍ଣ୍ଣାଦର୍ଶ । ଗ୍ଲାଡଷ୍ଟୋନ୍ ।

ସହାନୁଭୂତି ଦ୍ୱାରା କୁଟୁମ୍ବ ଲାଭହୁଏ । ଗାଲ୍ଟନ ।

ସୁନ୍ଦରୀ ସ୍ତ୍ରୀ ରତ୍ନ, ସାଧ୍ୱୀ ସ୍ତ୍ରୀ ମହାରତ୍ନ । ସାନଡ଼ା ।

ମନୁଷ୍ୟର ଗୃହ ତାହାର ଦୁର୍ଗ ସ୍ୱରୂପ । କୋକ୍ ।

ସମୁଦାୟ ମହତ୍ ଘଟଣାର ମୂଳରେ ରମଣୀ ବିଦ୍ୟମାନ ।
ଲାମାର୍ଟାଇନ୍ ।

ରମଣୀର ହୃଦୟ ଯେତେବେଳେ ଦୟାର ଆଧାର ହୁଏ, ତଦପେକ୍ଷା ଈଶ୍ୱରଙ୍କର ସୃଷ୍ଟିରେ କୋମଳତର ବସ୍ତୁ ଅଉ କିଛି ନାହିଁ । ଲୁଥାର ।

ଅଣା ଜାତିର ଲୋକର ସ୍ୱପ୍ନମାତ୍ର । ପ୍ରାୟର୍ ।

ଦୁଃଖ ପରେ ସୁଖ ବଡ ଆନନ୍ଦଜନକ । ଡ୍ରାଇଡେନ୍ ।

ଆତ୍ମଜ୍ଞାନ ହେଲେ ସର୍ବଜ୍ଞାନ ଲାଭ ହୁଏ । ପୋପ ।

ନିର୍ମଳଚିତ୍ତ ବ୍ୟକ୍ତିମାନେ ଧନ୍ୟ, କାରଣ ସେମାନେ ପରମେଶ୍ୱର ଦର୍ଶନ ଲାଭ କରିବେ । ସେଣ୍ଟମାଥିଉ ।

ଜ୍ଞାନାଲୋକ ପ୍ରକୃତରେ ବୟୋବୃଦ୍ଧ । ୟଙ୍ଗ ।

ଗଡ଼ୁଥିବା ପ୍ରସ୍ତରଖଣ୍ଡ ଶୈବାଳ ଯୁକ୍ତ ହୁଏନାହିଁ । ଟ୍ୟାସାଇ ।

ବିଶ୍ୱାସ ପ୍ରତ୍ୟକ୍ଷ ଦର୍ଶନ, ଏହା ଈଶ୍ୱର ଓ ପରଲୋକ ସାକ୍ଷାତ ଦର୍ଶନ କରେ । କେଶବଚନ୍ଦ୍ର ।

ଶୁଦ୍ଧ ଲୋକକୁ ସବୁ ବିଶୁଦ୍ଧ ଦେଖାଯାଏ । ଟାଇଟସ୍ ।

ଯେ ମୋ ନିକଟରେ ଉପସ୍ଥିତ ହୁଏ, ସେ ଯେ କୌଣସି ବିଷୟରେ ମୋହୋର ଗୁରୁ । ଏମର୍ଶନ ।

ଅର୍ଥଲୋଭ ସବୁ ଦୁଃଖର ମୂଳ । ବାଇବଲ୍ ଟିମୋଥି ।

ମୁଁ ଦଶଜଣ ଲୋକର ବଳ ଧାରଣ କରେଁ, କାରଣ ମୋହର ହୃଦୟ ନିର୍ମଳ । ଟେନିସନ୍ ।

ନମ୍ର ବ୍ୟକ୍ତିମାନେ ଧନ୍ୟ, କାରଣ ସେମାନେ ପୃଥିବୀ ଅଧିକାର କରିବେ । ସେଣ୍ଟ ମାଥିଉ ।

ମନ ନରକକୁ ସ୍ୱର୍ଗ ଓ ସ୍ୱର୍ଗକୁ ନରକ କରିପାରେ । ମିଲଟନ୍ ।

ମୁଁ କେବଳ ଏତିକି ଜାଣେ ଯେ "ମୁଁ କିଛି ଜାଣେନାହିଁ ।" ସକ୍ରେଟିସ ।

ମୋତେ ଅଳ୍ପ ପରିମାଣରେ ସ୍ନେହ କର, କିନ୍ତୁ ସେହି ସ୍ନେହ ଅଧିକ ସ୍ଥାୟୀ ହେଉ । ମାର୍ଲୋ ।

ଏହି ଯେ ବିଶ୍ୱାସ ବହୁଅଛି ଏହା ଅପେକ୍ଷା ଘଟିତର । ତୁମ୍ଭେ ପରମେଶ୍ୱରଙ୍କ ସ୍ମରଣ କର । ଇପିକ୍ଟେଟସ ।

ଯଦି ସେ (ଈଶ୍ୱର) ମୋତେ ତ୍ୟାଗ କରନ୍ତି ତଥାପି ମୁଁ ତାଙ୍କୁ ବିଶ୍ୱାସ କରିବି । ଦାଉଦ୍ ।

ଜନସାଧାରଣର ଅନ୍ତଃକରଣ ବୃତ୍ତି ଅନୁକୂଳ ନହେଲେ ଦେଶୋଦ୍ଧାରକାରୀ ମହାପୁରୁଷର ଆବିର୍ଭାବ ହୁଏ ନାହିଁ । କାରଲାଇଲ ।

ଯେଉଁମାନେ ନିଜକୁ ସାହାଯ୍ୟ କରନ୍ତି ଈଶ୍ୱର ସେମାନଙ୍କର ସହାୟ ହୁଅନ୍ତି । ଫ୍ରାଙ୍କଲିନ୍ ।

ତୁମ୍ଭେମାନେ ବିଶ୍ୱାସ କରୁଁ ଯେ ସକଳ ପ୍ରକାର ଅମଙ୍ଗଳର ଶେଷରେ କିଛି ମଙ୍ଗଳ ଅଛି । ଟେନିସନ ।

ଉନ୍ନତ ମନୁଷ୍ୟ ଆତ୍ମାନୁସନ୍ଧାନ କରେ, ନିକୃଷ୍ଟ ବ୍ୟକ୍ତି ପରାନୁସନ୍ଧାନ ପ୍ରୟାସୀ । କଂଫୁଚେ ।

ମୁଁ ଯିଶୁ, ମୂଷା ଓ ସେଣ୍ଟପଲ ଅପେକ୍ଷା ବଡ଼, ନିଜର ଶକ୍ତି ଉପରେ ଏପରି ବିଶ୍ୱାସ ଥିବା ଆବଶ୍ୟକ । ଥିଓଡ଼ୋରପାର୍କାର ।

ଯେ ବ୍ୟକ୍ତି ସମୟକୁ ଉପେକ୍ଷା କରେ ସମୟ ତାହା ପ୍ରତି ବାମ ହୋଇ ଥାଏ । ଫ୍ରାଙ୍କଲିନ ।

ଅତିରିକ୍ତ ଶିଷ୍ଟତା ପ୍ରଦର୍ଶନ କଲେ ଅନ୍ୟ ଲୋକର ବିରକ୍ତି ଓ ବିଶ୍ୱାସ ଭଙ୍ଗ ହୁଏ । ବେକନ ।

ଅର୍ଥ ଓ ସମ୍ମାନପ୍ରାର୍ଥୀର ଯତ୍ନ, ପରିଶ୍ରମୀ ଓ ମିତବ୍ୟୟୀ ହେବା ଆବଶ୍ୟକ । ଗୋଲ୍‌ଡସ୍ମିଥ ।

ମହାପୁରୁଷମାନେ ସ୍ୱଦେଶ ଓ ସ୍ୱଗୃହ ଛଡ଼ା ସର୍ବତ୍ର ମର୍ଯ୍ୟାଦା ପାଆନ୍ତି । ସେଣ୍ଟମାଥ୍ୟୁ ।

ଜଣେ ମନୁଷ୍ୟ ଯେ କାର୍ଯ୍ୟ କରିଅଛି ସମସ୍ତଙ୍କର ସେହି କାର୍ଯ୍ୟ କରିବାର ଅଧିକାର ଓ ଶକ୍ତି ଅଛି । ଇମର୍ସନ୍ ।

ପୁରାତନ ବିଧାନ ପରିବର୍ତ୍ତିତ ହେଉଅଛି ଓ ନୂତନ ବିଧି ତହିଁର ସ୍ଥାନ ଅଧିକାର କରୁଅଛି । ଟେନିସନ୍ ।

ଯେ ବ୍ୟକ୍ତି ଆତ୍ମବିଶ୍ୱାସ ଉପରେ ନିର୍ଭର କରିପାରେ ତାହାର ଉନ୍ନତି ଅନିବାର୍ଯ୍ୟ । ଲର୍ଡଲିଟନ୍ ।

ଜ୍ଞାନୀ ବ୍ୟକ୍ତି ଭାଗ୍ୟଦ୍ୱାରା ଖଣ୍ଡ ବିଖଣ୍ଡିତ ହେଲେ ମଧ୍ୟ ବିଘ୍ନ ବିପତ୍ତି ତାହାର କାର୍ଯ୍ୟ ହାନି କରି ପାରେନାହିଁ । ପ୍ଲୁଟାର୍କ ।

ଜଗତରେ ଅସାଧ୍ୟ କିଛି ନାହିଁ, ପରିଶ୍ରମ ଦ୍ୱାରା ସବୁ ସିଦ୍ଧ ହୁଏ । କଲମ୍ୟାନ ।

ଯେଉଁ ବ୍ୟକ୍ତି ଅବିଶ୍ରାନ୍ତ ପରିଶ୍ରମରେ ସକ୍ଷମ ତାହାର କଦାଚ କୌଣସି ବିଘ୍ନ ଘଟେ ନାହିଁ । କୋଲଟନ ।

ଶତ୍ରୁର ଉପକାର କର ଯେ ବ୍ୟକ୍ତି ତୁମ୍ଭର ବନ୍ଧୁ ହେବ । ଖ୍ରୀଷ୍ଟ୍ମାଉ ।

ମିତବ୍ୟୟିତା ବାର୍ଦ୍ଧକ୍ୟର ସୁଖାସନ । ଫ୍ରାଙ୍କଲିନ ।

ମିତବ୍ୟୟିତା ବିଜ୍ଞତାର ଦୁହିତା, ମିତାଚାରର ସହୋଦରା ଏବଂ ଦାନଶୀଳତାର ଜନନୀ । ଡାକ୍ତର ଜନସନ ।

ଧନଉପାର୍ଜ୍ଜନର ବାଟ-ହାଟକୁ ଯିବା ବାଟପରି ପ୍ରଶସ୍ତ, ପରିଶ୍ରମ ଓ ମିତବ୍ୟୟ ଉପରେ ଏହା ନିର୍ଭରକରେ । ଫ୍ରାଙ୍କଲିନ୍ତ ।

ଶୀଘ୍ର ଶୀଘ୍ର ଶୟନ ଏବଂ ଶୀଘ୍ର ଶୀଘ୍ର ଶଯ୍ୟାରୁ ଗାତ୍ରୋତ୍ଥାନ କଲେ ମାନବ ଧନୀ, ଜ୍ଞାନୀ ଓ ନିରୋଗ ହୋଇଥାଏ । ଫ୍ରାଙ୍କଲିନ ।

ତୁମ୍ଭର ଅନ୍ତର୍ନିହିତ ଭାବ ନିର୍ଭୟରେ ପ୍ରକାଶକର । ଦେଖିବ ତାହାହିଁ ସାର୍ବଭୌମିକ ସତ୍ୟ ରୂପେ ପରିଗଣିତ ହେବ । ଏମାର୍ସନ ।

ଯେବ୍ୟକ୍ତି କୌଣସି ବିଷୟର ସଂଶୋଧନ କରିପାରେ ସେ ଧନ୍ୟ, ଯେ ବ୍ୟକ୍ତି ସେ ବିଷୟରେ କେବଳ ଅଭିଯୋଗ କରେ ସେ ଧନ୍ୟ ନୁହେ । ଲର୍ଡକୋକ୍ ।

କ୍ଷମଶୀଳତା ସୌଭାଗ୍ୟର ଜନନୀ । ସ୍ମାଇଲ ।

ଯଦି ସ୍ତ୍ରୀ, ପୁତ୍ର, ଯଶ ଓ ମାନ ଏକ ଏକ ହୋଇ ଅନ୍ତର୍ହିତ ହୁଏ ତଥାପି ମୁଁ ମିଥ୍ୟା କଥା କହିବି ନାହିଁ । ହକ୍ସଲି ।

ଜଗଦୀଶ୍ୱର ଯେପରି ଦୟାଶୀଳ ଲୋକର ଅସଂଖ୍ୟ ପାପ କ୍ଷମା କରନ୍ତି, ଲୋକଙ୍କ ନିକଟରେ ସେହିପରି ଶିକ୍ଷାଗୁରୁର ଶତ ଅପରାଧ ମାର୍ଜିତ ହୁଏ । ଗ୍ରେଭିଲ ।

ପରିଶ୍ରମୀର ଚେଷ୍ଟା ସର୍ବଦା ଅଗ୍ରସର ହୋଇଥାଏ । ବକ୍‌ଷ୍ଟନ ।

ଅସମ୍ଭବ ! ଅସମ୍ଭବ ! "ଅସମ୍ଭବ" ଶବ୍ଦ ଫରାସୀ ଭାଷାରେ ନାହିଁ । ତାହା ଅପଦାର୍ଥମାନଙ୍କ ଅଭିଧାନର ଶବ୍ଦ । ନେପୋଲିୟନ ବୋନାପାର୍ଟ ।

ଯେଉଁ କାର୍ଯ୍ୟରେ ନିଯୋଜିତ ହୋଇଅଛ ଯଥାଶକ୍ତି ତାହା ସୁସମ୍ପନ୍ନ କରିବାକୁ ଚେଷ୍ଟା କର । ସଲୋମନ ।

ପ୍ରକୃତିର ସମ୍ପୂର୍ଣ୍ଣ ସମସ୍ତ ଉପରେ ଶ୍ରେଷ୍ଠତା ସହିତ ଯେଉଁ ବ୍ୟକ୍ତି ଅଧିକାର ସ୍ଥାପନ କରିବାକୁ ସକ୍ଷମ ସେହି ବ୍ୟକ୍ତିହିଁ ଶ୍ରେଷ୍ଠ । ହେଲ୍‌ଭାଶ୍ୟା ।

ଚିନ୍ତା ଜୀବନର ଶତ୍ରୁ । ସେକ୍ସପିଅର ।

ତୁମ୍ଭର ଅପମାନ ଗୁଡିକ ପାଣିରେ ଗାର ହେଉ । ବାଉନ

ବାତୁଳ ହେବାରେ ସୁଖଅଛି, ସେ ସୁଖ ବାତୁଳ ଛଡା ଅନ୍ୟ କେହି ଜାଣେ ନାହିଁ । ଡ୍ରାଇଡେନ ।

ଯେ ବ୍ୟକ୍ତି ଆଶାଉପରେ ନିର୍ଭର କରେ ତାହାକୁ ଅନଶନରେ ପ୍ରାଣ ପରିତ୍ୟାଗ କରିବାକୁ ହୁଏ । ପରିଶ୍ରମ ଅବତାର ମୁଖାପେକ୍ଷୀ ନୁହେ । ଫ୍ରାଙ୍କଲିନ ।

ପରିଶ୍ରମ ଦ୍ୱାରା ଆୟତ୍ତ ନହୁଏ ଏପରି କୌଣସି ବିଦ୍ୟା ବା ବିଜ୍ଞାନ ଶାସ୍ତ୍ର ନାହିଁ । ପରିଶ୍ରମ ଦାର୍ଶନିକର ପରଶମଣି ।

ଲର୍ଡକ୍ଲାରେଣ୍ଡନ ।

ଘୃଣାରୂପ ଅଗ୍ନିରେ ଯଦି ଶ୍ରମକାଷ୍ଠ ସଂଯୋଜିତ କରା ନଯାଏ ତାହାହେଲେ ଘୃଣାର ତେଜ କ୍ରମଶଃ ହ୍ରାସ ହୋଇ ଥାଏ । ଭଲଟାୟାର ।

ମୋତେ ଏକଶତ ସୁମାତା ଦିଅ, ଦେଖିବ ମୁଁ ଫରାସୀ ଜାତିକୁ ମହାଜାତିରେ ପରିଣତ କରିବ ।

। ନେପୋଲିୟନ ବୋନାପାର୍ଟ ।

ଯୌବନଗର୍ବର ଧର୍ମାଗମରେ ଯେଉଁ ବ୍ୟକ୍ତି ସମସ୍ତ ପ୍ରତି ଲକ୍ଷ୍ୟ ରଖନ୍ତି ସେହି ବ୍ୟକ୍ତି ସଂସାରରେ ବାଳକ ଓ ବିଚକ୍ଷଣ ।

ସଲୋମନ ।

ଘଣ୍ଟା ଓ ମିନିଟର କଣ୍ଟାଖିନ ଘଟିକାଯନ୍ତ୍ର ଚଳନ୍ତେ ବା ବନ୍ଦ ହେଲେ ଯେପରି କୌଣସି କାର୍ଯ୍ୟ ହୁଏ ନାହିଁ, ସେହିପରି ଅଳସ ବ୍ୟକ୍ତିର ଏ ସଂସାରରେ ଆବଶ୍ୟକତା ନାହିଁ । କାଉପର ।

ପିଲାଙ୍କୁ ମନୁଷ୍ୟର ପ୍ରକୃତି ଜଣାପଡ଼େ । ମିଲ୍ଟନ୍ ।

ପାପୀକମନ୍ତେ ଆମ୍ଭମାନଙ୍କର କ୍ରନ୍ଦନ କରିବା ଉଚିତ, କିନ୍ତୁ ଆମ୍ଭେମାନେ ପାପସଙ୍ଗେ କ୍ରୀଡ଼ା କରିବା ନାହିଁ ।

ବ୍ରାଙ୍କା

କାନ୍ଦୁଥିବା ଲୋକମାନଙ୍କ ସଙ୍ଗେ କାନ୍ଦ ଓ ହସୁଥିବା ଲୋକଙ୍କ ସଙ୍ଗେ ହସ । ସେଣ୍ଟପଲ ।

ବିବେକର ଅଦାଲତରେ ବଡ ସାନ ବିଚାର ନାହିଁ ।

ହେଲ୍‌ପସ ।

ସ୍ନେହ ଜୀବନର ଅନ୍ତିମ କାଳରେ ମଧ୍ୟ ଆନନ୍ଦ ଦିଏ ।

ସ୍କଟ୍ ।

ଯେଉଁ ଲୋକ କେବେହେଁ ଆଘାତ ପାଇନାହିଁ ସେ କ୍ଷତ ଚିହ୍ନ ଦେଖିଲେ ବିଦ୍ରୂପ କରେ । ସେକ୍ସପିଅର ।

ଅମ୍ଭମାନଙ୍କ ଅନ୍ତସ୍ତଳରୁ ବହିର୍ଗତ ହାସ୍ୟରେ ଯୁକ୍ତ ଦୁଃଖ-ମିଶ୍ରିତ । . ଶେଲି ।

ଆମ୍ଭମାନଙ୍କର ଅଜ୍ଞାତସାରେ କ୍ରୋଧ ଅଛି ଏକଥା ଜାଣି-ପାରିଲେ ଅନେକ ଉପଦ୍ରବ ଲାଭ ହୁଏ । ଅନାମ ।

-ନ ପଡ଼ିଲେ ବାହାଦୂରି ହୁଏ ଏମନ୍ତ ନୁହେଁ, କିନ୍ତୁ ଯେତେଥର ପଡ଼ିବ, ସେତେଥର ଉଠି ବସିଲେ ସିନା ବାହାଦୁରି ; ଅନାମ ।

ଅନ୍ୟମାନେ ତୁମ୍ଭଙ୍କୁ ଯେତେ ମନୋହରନ୍ତୁ ତଦପେକ୍ଷା ଅଧିକ ହେବାକୁ ନିଜେ ଶିକ୍ଷାକର । ବ୍ରାଉନ ।

ସ୍ୱଦେଶ, ଈଶ୍ୱର ଓ ସତ୍ୟ ଏହି ତିନୋଟି ତୁମ୍ଭର ସର୍ବଦା ଲକ୍ଷ୍ୟ ହେଉ । ସେକ୍ସପିଅର ।

ଯେଉଁମାନଙ୍କ ହୃଦୟରେ ଉଚ୍ଚଚିନ୍ତା ଥାଏ, ସେମାନେ କେବେହେଁ ଏକାକୀ ନୁହନ୍ତି । ସର, ଫିଲିପ୍ସ ସିଡ୍ନୀ ।

ଯାହା ପ୍ରତି କ୍ରୋଧ କରାଯାଏ ତାହାର ଯେତେ ଅନିଷ୍ଟ ନହୁଏ, ଯେ କ୍ରୋଧକରେ ତାହାର ତଦପେକ୍ଷା ବେଶୀ ଅନିଷ୍ଟ ହୁଏ । କ୍ଲାରେଣ୍ଡନ୍ ।

ଲଜ୍ଜାଶୀଳତା ଯୁବାର ଭୂଷଣ, କିନ୍ତୁ ବୃଦ୍ଧର ଦୂଷଣ । ଆରିଷ୍ଟଟଲ୍ ।

ନିଜର ବାହ୍ୟିକ ଆଚରଣ ଖଣ୍ଡିଏ ଦର୍ପଣ ପରି, ଯହିଁରେ ପ୍ରତ୍ୟେକ ମନୁଷ୍ୟର ରୂପ ପ୍ରତିଫଳିତ ହୁଏ । ଗେଟେ ।

ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଜୀବନ କ୍ଷୟ ହେଉଥାଏ । ଯଙ୍ଗ୍ ।

ମନୁଷ୍ୟର ବିବେକ ମନୁଷ୍ୟର ଏକମାତ୍ର ବିଚାରପତି । ଲିଟନ୍ ।

ଧୃତି ସନ୍ତୁଷ୍ଟ ବ୍ୟକ୍ତି ମହାପୁରୁଷ ଅଟନ୍ତି । ସ୍ପେନ୍ସର୍ ।

ଭୀରୁମାନେ ମୃତ୍ୟୁ ପୂର୍ବରୁ ଅନେକ ଥର ମରି ଥାଆନ୍ତି, କିନ୍ତୁ ସାହସୀ ଲୋକ ଥରେ ମାତ୍ର ମରେ । ସେକ୍ସପିଅର ।

ହୀର ହୀରକୁ କାଟେ । ଫୋର୍ଡ ।

ଦୂରରୁ ପର୍ବତକୁ ରମଣୀୟ ନୀଳାଭ ଦେଖାଯାଏ ବୋଲି ବିଚାର ହୁଏ? — ବୋଧ

କର୍ତ୍ତବ୍ୟ ଅମ୍ଭମାନଙ୍କ ହାତରେ, ଫଳ ଈଶ୍ୱରଙ୍କ ହାତରେ ।
ସେସିଲ୍ ।

ପୃଥିବୀରେ ଏପରି କୌଣସି ଦୁଃଖ ନାହିଁ ଯାହାକୁ ସ୍ୱର୍ଗ ଲଘାଇ ଦେଇ ନପାରେ । ମୁର ।

ଭ୍ରମରେ ପଡ଼ିବା ମାନୁଷିକ, କ୍ଷମା କରିବା ଐଶ୍ୱରିକ ।
ପୋପ ।

ଉତ୍ତମ ଲୋକମାନେ ବିପତ୍ତି ଦ୍ୱାରା ଅଧିକତର ଉତ୍ତମ ହୁଅନ୍ତି । ଗ୍ରେଞ୍ଜର୍ ।

ପାଣ୍ଡୁ ରୋଗୀକୁ ସବୁ ପଦାର୍ଥ ପୀତବର୍ଣ୍ଣ ଦିଶେ । ପୋପ ।

ଭବିଷ୍ୟତର ଚିତ୍ର ଯେତେ ଦୂର ଆଶାପ୍ରଦ ହେଲେହେଁ ତାକୁ ବିଶ୍ୱାସ କର ନାହିଁ । ଲଙ୍ଗ୍‌ଫେଲୋ ।

ଗୋପନ ଭାବରେ ଉତ୍ତମ କାର୍ଯ୍ୟ କର । ପୋପ ।

କୃତଜ୍ଞ ଲୋକ କୃତଜ୍ଞତା ଦ୍ୱାରା ସଙ୍ଗେ ସଙ୍ଗେ ଋଣ ମୁକ୍ତ ହୁଏ । ମିଲ୍ଟନ ।

ଦୁଃଖଗ୍ରସ୍ତ ଲୋକ ଦୁଃଖୀର ସଙ୍ଗ ଭଲ ପାଏ ।
ସେକ୍ସପିଅର ।

ଅଭ୍ୟାସ ପ୍ରକୃତିର ଦଶଗୁଣ । ଉଏଲିଙ୍ଗ୍‌ଟନ ।

ଧର୍ମ୍ମମାନେ ଯେପରି ଭାବରେ ଭାବିଲେ ମଧ୍ୟ ଯୁଦ୍ଧ ପାଶବିକ ଓ ନୃଶଂସ ବ୍ୟାପାର ବ୍ୟତୀତ ଆଉ କିଛି ନୁହେଁ ।
ଗିର୍ବନ ।

କ୍ଷୁଦ୍ର କ୍ଷୁଦ୍ର ଅଭ୍ୟାସ କ୍ରମେ ଅପରାଧରେ ପରିଣତ ହୁଏ ।

ହାନାମୋର ।

ଯେ କୌଣସି ବିଷୟରେ ଅଭିଜ୍ଞତା ଲାଭ କଲେ ମଧ୍ୟ ତାହା ଦ୍ୱାରା ଉପକାର ପାଇବ । ପୃଥିବୀରେ ଏପରି କୌଣସି ବସ୍ତୁ ନାହିଁ ଯାହାଦ୍ୱାରା କିଛି ହେଲେ ଶିକ୍ଷା ଲାଭ ନହୁଏ ।

ଡାକ୍ତର ଜନସନ ।

ନାରୀମାନେ କୌଣସି ଅଂଶରେ ପୁରୁଷମାନଙ୍କ ଅପେକ୍ଷା ହୀନ ନୁହନ୍ତି । ବିଶେଷତଃ ଧର୍ମ ପ୍ରବୃତ୍ତି ନାରୀ ହୃଦୟରେ ଯେପରି ବଳବତୀ, ପୁରୁଷର ହୃଦୟରେ ସେପରି ନୁହେଁ ।

ଜନଷ୍ଟୁୟାର୍ଟ ମିଲ ।

ମନୁଷ୍ୟ ଯଦି ସମୟର ସଦ୍‌ବ୍ୟବହାର କରେ ତାହାହେଲେ କର୍ଷିତ କ୍ଷେତ୍ର ପରି ଫଳ ଲାଭ ହେବ । ଉର୍ବର କ୍ଷେତ୍ର ଯଦି ଆବାଦ କରାନଯାଏ ସମୟରେ ତାହା କଣ୍ଟକାବୃତ ହୁଏ ।

ଡେଭିଡ ହିଉମ୍ ।

ବ୍ୟବହୃତ ଦ୍ରବ୍ୟର ଉଜ୍ଜ୍ୱଳତା ଦିନକୁଦିନ ବୃଦ୍ଧି ହୋଇଥାଏ । ଆଳସ୍ୟ ରୂପ କଳଙ୍କ ଯେପରି ଶରୀର କ୍ଷୟ କରେ ପରିଶ୍ରମରେ କେବେହେଁ ସେପରି ନଷ୍ଟ ହୁଏନାହିଁ । ଅଧିକନ୍ତୁ ଭାବରେ ଉତ୍ତରୋତ୍ତର ଲାବଣ୍ୟର ବୃଦ୍ଧିହୁଏ ।

ସ୍କଚପ୍ରବାଦ ।

ସଙ୍ଗୀତ ବିଦ୍ୟା ନ ଶିଖିଲେ ମନୁଷ୍ୟର ଶିକ୍ଷା ସମ୍ପୂର୍ଣ୍ଣ ହୁଏନାହିଁ ।

ପ୍ଲେଟୋ ।

ମାନବ ସମାଜରେ ତୁମ୍ଭର ପୁରୁଷତ୍ୱର ଯେତେ ଅଧିକ ପ୍ରଭାବ ଥିଲେ ମଧ୍ୟ ଯଦି ତୁମ୍ଭଙ୍କୁ ଉଚ୍ଚତର ଧର୍ମ୍ମତତ୍ତ୍ୱର ଅନନ୍ତ ମଧୁ ରାଜ୍ୟରେ ପ୍ରବେଶ କରିବାକୁ ହୁଏ ତେବେ ତୁମ୍ଭର ଅମ୍ଭାକୁ ସେଠାରେ ନାରୀ ଭାବରେ ପ୍ରବେଶ କରିବାକୁ ହେବ ।

ନାରୁମ୍ୟାନ ।

ପ୍ରତିଦିନହିଁ ଅମ୍ଭମାନଙ୍କ ଜୀବନର ଅଂଶ । ପ୍ରତ୍ୟେକ ଦିନର ସମଷ୍ଟିରେ ଆମ୍ଭମାନଙ୍କର ଜୀବନ ପୂରଣ ହୋଇଥାଏ । ଅତଏବ ପ୍ରତିଦିନ କୌଣସି ଏକ କାର୍ଯ୍ୟରେ ସଞ୍ଚିତ ଥାଇ ସମୟର ସଦ୍‌ବ୍ୟବହାରରେ ଯେପରି ଦିନପାତ ହୁଏ ତତ୍ପ୍ରତି ଲକ୍ଷ୍ୟ ରଖିବା ସମସ୍ତଙ୍କର କର୍ତ୍ତବ୍ୟ । ଋଣପ ଦ୍ୱଲ ।

ଯଦି ଜଗଦୀଶ୍ୱରଙ୍କ ନିକଟରୁ ଯାହା ପ୍ରାପ୍ତ ହେଉଅଛୁ ସେ ସମସ୍ତ ଏକ କାଳରେ ନଷ୍ଟ କରିବାକୁ ଇଚ୍ଛାକର, ଯଦି ତୁମ୍ଭେ ନିଜେ ଅସୁଖୀ ହେବାକୁ ଏବଂ ପରକୁ ଅସୁଖୀ କରିବାକୁ ବାସନା କର ତାହାହେଲେ ତୁମ୍ଭଙ୍କ ଅତୀବ ସରଳ ପଥ ରହିଅଛି-କେବଳସ୍ୱାର୍ଥପରହୁଅ । ରେଭରେଣ୍ଡ ଚାର୍ଲସକିଂହ୍ଲି ।

ଉନ୍ନତର ପଦକ୍ଷେପ ହେବେ ସୁଦ୍ଧା ସ୍ଖଳିତ ହୁଏନାହିଁ । ଯାହା ବିଶ୍ୱାସରେ ଧର୍ମ୍ମର ସାହାଯ୍ୟ ଲାଭ ହୁଏ । ଯେବ୍ୟକ୍ତି ପରର ସାହାଯ୍ୟ ନନେଇ କାର୍ଯ୍ୟ କ୍ଷେତ୍ରରେ ଅଗ୍ରସର ହୁଏ ତାହା ବିପଦରେ ସୁଦ୍ଧା ତାଙ୍କର କିଛିମାତ୍ର ଅନିଷ୍ଟ ଘଟେନାହିଁ । ଯାହା ନିର୍ଭରଶୀଳ ବ୍ୟକ୍ତି ପ୍ରତି ବିଧାତା ଅନୁକୂଳ । ଇମର୍ସନ ।

ସୁଖୀ ପରିବାରରେ ହିଁ ଆନନ୍ଦ ! ମୋର ଯଦି ଶକ୍ତି ଥାନ୍ତା ତେବେ ଏହି ଘୂର୍ଣ୍ଣିତ ପୃଥିବୀକୁ କ୍ଷଣକାଳ ତାହାର ଗତିରୋଧ କରି ତାହା ଦର୍ଶନ କରିବାକୁ କହନ୍ତି । ଥିଓଡୋର ପାର୍କର ।

ଆଳସ୍ୟ ଶରୀର ଓ ମନର ଶତ୍ରୁ, ଗର୍ହିତ କାର୍ଯ୍ୟର ଧାତ୍ରୀ, ସଦୁପଦେଶର ବିମାତା, ଅନ୍ୟାଯ୍ୟ କାର୍ଯ୍ୟର ପୋଷକ, ନିର୍ଦ୍ଦିଷ୍ଟ ସାତଟି ମହାପାପର ଗୋଟିଏ ପାପ, ଶୟତାନର ଆସନ, ଚିନ୍ତା ବିକାର ଓ ଅନ୍ୟାନ୍ୟ ପୀଡ଼ାର ନିଦାନ । ବର୍ଟନ ।

ଯେ ବ୍ୟକ୍ତି ବିନା କାର୍ଯ୍ୟରେ ଏକମୁହୂର୍ତ୍ତ ନଷ୍ଟ କରେ ସେ ବ୍ୟକ୍ତି ଏକ ଦିନରେ ସହସ୍ର ମୁଦ୍ରା ଲାଭରୁ ବଞ୍ଚିତ ହୁଏ । ସାମାନ୍ୟ ଛିଦ୍ର ଦ୍ୱାରା ପ୍ରବୃହତ୍ ଅର୍ଣ୍ଣବ ପୋତ ଜଳମଗ୍ନ ହୋଇପାରେ, ବିନ୍ଦୁ ବିନ୍ଦୁ ଜଳପାତରେ ସୁଦୃଢ଼ ପ୍ରସ୍ତରଖଣ୍ଡ ବିଦୀର୍ଣ୍ଣ ହୋଇଯାଏ । ଫ୍ରାଙ୍କଲିନ୍ ।

ମାନସିକ ଶକ୍ତିରେ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ପାର୍ଥକ୍ୟ ଦୃଷ୍ଟ ହୁଏ । ଏହି ପାର୍ଥକ୍ୟ ସେମାନଙ୍କ (ନାରୀଜାତି) ପ୍ରତି ଯୁଗ ଯୁଗାନ୍ତର ବ୍ୟାପୀ ଅତ୍ୟାଚାରର ଫଳ । ନାରୀଜାତିମଧ୍ୟ ଏହିବିଷୟରେ ଅତିମାତ୍ରାରେ ଶିଥିଳତା ପ୍ରଦର୍ଶନ କରୁ ଅଛନ୍ତି । ବେଶ-ବିନ୍ୟାସରେ ସେମାନଙ୍କର ଯେତେ ଶକ୍ତି ବ୍ୟୟିତ ହୋଇଅଛି, ଆପଣାର ଅବସ୍ଥାର ଉନ୍ନତି ସକାଶେ ତେତିକି ଶକ୍ତି ନିୟୋଗ କରିଥିଲେ ସେମାନଙ୍କ ଅବସ୍ଥା ଅନେକ ପରିମାଣରେ ଉନ୍ନତ ହୋଇଥାନ୍ତା । ଫ୍ରାନ୍ସେସ ପାଓ୍ୱାର କବ ।

ନିମ୍ନଲିଖିତ ପୁସ୍ତକମାନ ଏଠାରେ ଏବଂ କଟକର
ପୁସ୍ତକ ଦୋକାନମାନଙ୍କରେ ବିକ୍ରୟାର୍ଥ ଜମାଅଛି ।

| | | |
|---|---|---|
| ଜାତୀୟ ଗୀତ | ... .... | ଽ ୦ ୧ ୬ |
| ଉତ୍କଳ ଜାତୀୟଗୀତି | ... .... | ଽ ୦ ୧ ୯ |
| ନାରିକେଳ ବୃକ୍ଷ | ... ... | ଽ ୦ ୧ ୨ |
| ସମ୍ରାଟ ଚରିତ | ... .... | ଽ ୦ / |
| ହେମଲତା | .... .... | ଽ ୦ / |
| ସୁବର୍ଣ୍ଣରେଖା | .... ... | ଽ ୦ / |
| ଶିକ୍ଷା-ବିନୋଦ | .... .... | ଽ ୦ / ୬ |
| ରାମ ସହସ୍ରନାମ୍ | .... .... | ଽ ୦ / |
| ବସୁଠକ୍କୀ ଟୀକାସ୍ତା | .... ... | ଽ ୦ / |
| ସଦାଗୃର | ... ... | ଽ ୦ / ୬ |
| ନୀତି ପରାଗ ୧ ମ | ... ... | ଽ ୦ / |
| ନୀତିପରାଗ ୨ ୟ | .... .... | ଽ ୦ / |
| ଗୋବ୍ରିକଥା ୧ ମ | ... .... | ଽ ୦ / |
| ଗୋଚ୍ରିକଥା ୨ ୟ | ... ... | ଽ ୦ / |
| ନୀତିମନୋରମା | ... ... | ଽ ୦ ୧ ୨ |
| ନୀତି ନିର୍ମାଲ୍ୟ | ... ... | ଽ ୦ ୧ ୯ |
| ଭଜନ ଚନ୍ଦ୍ରିକା | .... .... | ଽ ୦ / |
| ଛନ୍ଦକାଲକୌତୁକ | ... ... | ଽ ୦ ୧ ୯ |

ମେନେଜର—ସର୍ବଶୁଭ ପ୍ରେସ
ରମ୍ଭା ପୋଃ • ଗଞ୍ଜାମ ।